ଜନନୀ—ସତେ ଯିବୁ ରେ ଧନ । ତୋତେ ମୁଁ ଯେ ବାର ବର୍ଷର ଲହ ପୋଷିଦେଇଛି । ଏବେ ତୋତେ ଛାଡ଼ି ମୁଁ ବଞ୍ଚିବ କିପରି କହିଲୁ ?

ଧର୍ମପଦ—ତୁମେ ଚିନ୍ତା କର ନାହିଁ ମା । ବାପା ମୋତେ ଦେଖି କେଡ଼େ ଖୁସି ହେବେ ଭାବିଲ । ତାଙ୍କର କୁଶଳ ସମାଚାର ନେଇ ମୁଁ ଅଳ୍ପ ଦିନରେ ଫେରିଆସିବି ଯେ !

ଜନନୀ—ନେଇ ଯେବେ ଯାଅ ରେ ବାବୁ । ବାପାଙ୍କ ପାଖକୁ ଯିବୁ, ତୋତେ ମୁଁ ମନା କରିବି କିପରି ? ଆଶୀର୍ବାଦ କରୁଛି, ତୁ ତୋହର ବାପା ଅଜାଙ୍କର ଟେକ ରଖ । ମାତ୍ର ବାପପୁଅ ତ କେହି କାହାରିକୁ ଦେଖି ନାହଁ, ଚିହ୍ନାଚିହ୍ନି ହେବ କିପରି ? ଆମ ବାଡ଼ିର କୋଳଗଛିକି ନେଇ ଯା । ଏହାକୁ ଦେଖାଇଲେ ବାପା ତୋତେ ନିଶ୍ଚୟ ଚିହ୍ନିପାରିବେ ।

## ପ୍ରଶ୍ନ

୧ । କୋଣାର୍କ ମନ୍ଦିର କେଉଁଠାରେ ? ଏହା କେଉଁ ରାଜାଙ୍କ ଦ୍ୱାରା ତିଆରି ହୋଇଥିଲା ?

୨ । ଧର୍ମପଦ ଓ ତାହାର ଜନନୀଙ୍କ କଥୋପକଥନକୁ ସଂକ୍ଷେପରେ ନିଜ ଭାଷାରେ ଲେଖ ।

୩ । କୋଣାର୍କମନ୍ଦିରର ଗଠନପ୍ରଣାଳୀ ସମ୍ବନ୍ଧରେ ଗୋଟିଏ ରଚନା ଲେଖ ।

୪ । ଟେକ ରଖିବା, ରକ୍ତ ଶୁଖିଯିବା, ବୁକୁ କୁଣ୍ଢେମୋଟ ହେବା, ମନ ଘାଣ୍ଟି ହେବା—ଏଗୁଡ଼ିକର ମର୍ମ ପ୍ରକାଶ କର ।

---

# ପ୍ରାଣବଳି

( ୧ )

ଧର୍ମପଦ ମାତାଙ୍କଠାରୁ ବିଦାୟ ଘେନି କୋଣାର୍କରେ ପହଞ୍ଚିଲା । ପିତାଙ୍କୁ ପରିଚୟ ଦେବା ଆଗରୁ ସେ ଶୁଣିଲା, ମନ୍ଦିରର ଅନ୍ୟସବୁ ଅଂଶ ନିର୍ମିତ ହୋଇଥିଲେ ମଧ୍ୟ ତାହାର ଚୂଡ଼ାକୁ କେହି ସମ୍ପୂର୍ଣ୍ଣ କରି ପାରୁ ନାହାନ୍ତି । ତେଣୁ ରାଜା ଆଦେଶ କରିଥିଲେ ଯେ ସେହି ଦିନକମଧ୍ୟରେ ଦେଉଳର ଚୂଡ଼ାକୁ ସମ୍ପୂର୍ଣ୍ଣ ନ କଲେ ବାର ଶହ ବଢ଼େଇଙ୍କ ମୁଣ୍ଡକାଟ ହେବ । ଧର୍ମପଦ ତାହାର ବଂଶଗତ ବ୍ୟବସାୟ କିଛି କିଛି ଶିଖିଥିଲା । ରାଜାଙ୍କ କଠୋର ଆଦେଶରେ କାରିଗରମାନଙ୍କୁ ଚିନ୍ତାମଗ୍ନ ଦେଖି ସେ ଯାଇ ମନ୍ଦିରର ଚୂଡ଼ା ପରୀକ୍ଷା କଲା ଏବଂ ଅକ୍ଳେଶରେ ତାହାକୁ ସମ୍ପୂର୍ଣ୍ଣ କରି ପାରିଥିଲା । ତାହାର ଅଦ୍ଭୁତ ଶକ୍ତି ଯୋଗୁ କାରିଗରମାନେ ପ୍ରାଣ ପାଇ ଆହ୍ଲାଦିତ ହେଲେ । କିନ୍ତୁ ଧର୍ମପଦ ଜୀବିତ ରହିଲେ କାଳେ ଏ କଥା ପ୍ରକାଶ ପାଇଯିବ, ଏହି ଭୟରେ ତାହାର ପ୍ରାଣନାଶ କରିବାକୁ ସେମାନେ ସ୍ଥିର କଲେ । ଧର୍ମପଦ ସେ କଥା ଜାଣିପାରି ନିଜେ ମରିବାପାଇଁ ପ୍ରସ୍ତୁତ ହେଲା ।

ଏହି ଘଟଣାରେ ବିସ୍ମିତ ହୋଇ ଧର୍ମପଦର ପିତା ବାଳକଟିର ପରିଚୟ ପାଇବା ଲାଗି ତାହାକୁ ଡାକି ପଚାରିଲେ, "କିଏ ତୁ ବାଳକ, ଏଡ଼େ ବଡ଼ ଦୁଃସାହସିକ କାର୍ଯ୍ୟ କଲୁ ? ଯେଉଁ ମନ୍ଦିରର ଚୂଡ଼ାକୁ ଓଡ଼ିଶାର ବାର ଶହ ଶ୍ରେଷ୍ଠ ବିନ୍ଧାଣି ନିର୍ମାଣ କରିବାକୁ ସମର୍ଥ ହେଲେ ନାହିଁ, ତୁ ତାହାକୁ ଏତେ ସହଜରେ ପାରିଲୁ କିପରି ? କିନ୍ତୁ ଏହାର ଫଳ କଅଣ ହେବ ଜାଣୁ କି ?"

ଧର୍ମପଦ ପ୍ରଥମେ ଅପଣାର ପରିଚୟ ନ ଦେଇ କହିଲା, "ଜାଣେଁ, ଏଥିପାଇଁ ମୋତେ ନିଜ ମସ୍ତକ ଦେବାକୁ ପଡ଼ିବ। କିନ୍ତୁ ମରିବାକୁ ମୋର ଟିକେ ଦୁଃଖ ନାହିଁ। ବାର ଶହ ବଢ଼ାଇଙ୍କ ଜୀବନ ରକ୍ଷି, ପୁଣି ଜଗତରେ ଏହି ବିଶାଳ କୀର୍ତ୍ତିକୁ ପୂର୍ଣ୍ଣ କରି ମୁଁ ଯେଉଁ ଆନନ୍ଦ ପାଇଅଛି, ତାହା ତୁଳନାରେ ମରଣ ଅତି ତୁଚ୍ଛ।"

ପିତା—ଧନ୍ୟ ତୋର ସାହସ! ଏହି ଅଳ୍ପ ବୟସରେ ଏଡ଼େ ବଡ଼ କଥା ତୁ କାହୁଁ ଶିଖିଲୁ? ଯେଉଁ ଦେଶରେ ତୋହି ପରି ବାଳକର ଜନ୍ମ ହୋଇଛି, ସେ ଦେଶରେ କେଉଁ କୋଣାର୍କ ଅବଶ୍ୟକ? ଭଗୀରଥ ହୋଇ ବଢ଼ାଇ-ବଂଶକୁ ଉଦ୍ଧାର କରିବାକୁ ଜନ୍ମଗ୍ରହଣ କରିଥିଲୁ କିଏ ତୁହି? ବାଳକ ହେଲେହେଁ ତୁ ଆଜି ସମଗ୍ର ଦେଶର ପୂଜ୍ୟ ହେବାକୁ ସାମର୍ଥ୍ୟ ଲାଭ କରିଅଛୁ। ଧନ୍ୟ ତୋହର ପିତାମାତା!

ଧର୍ମପଦ—ମୋତେ ଅପରାଧୀ କରନ୍ତୁ ନାହିଁ ପିତା!

ପିତା—ପିତା! କିଏ ତୋର ପିତା?

ଧର୍ମପଦ—ତୁମେ। ଏଇ ଦେଖ ତାହାର ନିଦର୍ଶନ। ମୋର ମା ଆମ ବାଡ଼ିର ଏହି କୋଳିଗଛକୁ ତୁମକୁ ଦେଖାଇବା ପାଇଁ ଦେଇଛନ୍ତି।

ପିତା ପୁତ୍ରକୁ ଆଲିଙ୍ଗନ କରି ଗଦ୍‌ଗଦ୍‌ ସ୍ୱରରେ କହିଲେ, "ଧର୍ମପଦ! ମୋର କୁଳ-ପ୍ରଦୀପ! ମୋର ଅଭିମନ୍ୟୁ! ତୁହି ତେବେ ଆଜି ତୋର ପିତୃକାର୍ଯ୍ୟକୁ ସମାପ୍ତ କଲୁ। ତୁହି ତେବେ ମୋର ଧର୍ମପଦ, ଗର୍ଭରେ ଥିବା ସମୟରେ ଯାହାର ନାମକରଣ ମୁଁ କରି ଆସିଥିଲି? କିନ୍ତୁ ମୁଁ ତୋତେ କଦାପି ଛାଡ଼ିପାରିବି

ନାହିଁ । ସଂସାର ଜଳୁଛନ୍ତି ହେଉ, ବାର ଶହ ବଢ଼ାଣିଙ୍କ ମସ୍ତକ ଭୂତଳରେ ଲୋଟୁ; ତୋତେ ଛାଡ଼ି ଦେବେ ହେଲେ ମୁଁ ରହିପାରିବି ନାହିଁ । ତୁ ଯେ ମୋର ଜୀବନ ।”

ଧର୍ମପଦ—ପିତା, ଏବେ ମୋତେ ପୁତ୍ର ବୋଲି ଚିହ୍ନି ଅପଣ ସ୍ନେହାନ୍ଧ ହୋଇ ପଡ଼ିଛନ୍ତି । ମାତ୍ର ବାର ଶହ ବଢ଼ାଣିଙ୍କ ଜୀବନ ରକ୍ଷା କରିବାପାଇଁ ଆଜି ମୋର ମରିବା ଅବଶ୍ୟକ ହେଉଅଛି । ସ୍ଥିରଚିତ୍ତରେ ବିଚାର କରନ୍ତୁ, ବାର ଶହ ବଢ଼ାଣି, ତାଙ୍କର ପୁତ୍ର, କନ୍ୟା, ସ୍ତ୍ରୀ ପ୍ରଭୃତି ସମସ୍ତଙ୍କ ଦାୟିତ୍ୱ ଆପଣଙ୍କ ଉପରେ । ଆପଣ 'ବାର ଶହ ବଢ଼େଇରେ ଦାୟୀ, ନା ପୁଅରେ ଦାୟୀ ?'

ପିତା—ନା ନା ବାପ । ତୋତେ ଛାଡ଼ି ମୁଁ କଦାପି ବଞ୍ଚିପାରିବି ନାହିଁ ।

ଧର୍ମପଦ—ଆପଣଙ୍କୁ ବଞ୍ଚିବାକୁ ହେବ । ମୋର ସ୍ନେହଶୀଳା ଜନନୀ ଆପଣଙ୍କ ପଥକୁ ଅନାଇ ବସିଅଛନ୍ତି । ତାଙ୍କୁ ଯାଇ ସାନ୍ତ୍ୱନା ଦିଅନ୍ତୁ ।

ପିତା—ସାନ୍ତ୍ୱନା ଦେବି ? କି ସାନ୍ତ୍ୱନା ଦେବି ରେ ବାପ ? ତୋତେ ହରାଇ ମୋର ଏହି ଦୀନ ଜୀବନକୁ ଘେନି ଫେରିଗଲେ କେଉଁ ଜନନୀର ହୃଦୟ ସନ୍ତୁଷ୍ଟ ହେବ ?

ଧର୍ମପଦ—ଆପଣ ଶୋକରେ ଅଧୀର ହୁଅନ୍ତୁ ନାହିଁ, ପିତା । ନିଜ ବଂଶର ମର୍ଯ୍ୟାଦା ପାଇଁ, ବଢ଼ାଇକୁଳର ପ୍ରାଣରକ୍ଷା ପାଇଁ, ପୁଣି ସ୍ୱଦେଶର କୀର୍ତ୍ତିରକ୍ଷା ପାଇଁ ମୁଁ ଆଜି ମରିବାକୁ ଯାଉଛି । ଏହାଠାରୁ ବଳି ବଡ଼ିବା କଅଣ ଅଧିକ ଗୌରବର ବିଷୟ ? ମନୁଷ୍ୟର ଧରମାୟୁ ବା କେତେ ? କିନ୍ତୁ ଏହି କୋଣାର୍କ ମନ୍ଦିର ଥିବା ପର୍ଯ୍ୟନ୍ତ

ମୋର କୀର୍ତ୍ତି ଜୀବିତ ଥିବ । ମୋର ତ୍ୟାଗ ଏ ଦେଶର କେତେ ସନ୍ତାନଙ୍କୁ ଅନୁପ୍ରାଣିତ କରିବ ।

ଧର୍ମପଦ ଏହା କହି ପିତାଙ୍କୁ ନମସ୍କାର କରି ବିଦାୟ ହୋଇଗଲେ ଏବଂ ଚନ୍ଦ୍ରଭାଗା ନଦୀର ଗଭୀର ଗର୍ଭରେ ଦେହ ବିସର୍ଜ୍ଜନ କଲେ ।

## ପ୍ରଶ୍ନ

୧ । ଧର୍ମପଦ ମରିବାକୁ ଗୌରବର ବିଷୟ ବୋଲି କାହିଁକି ମନେ କଲେ ?

୨ । ଅଭିମନ୍ୟୁ ଓ ଭଗୀରଥଙ୍କ ବିଷୟ ଏ ପାଠରେ କାହିଁକି ଉଲ୍ଲେଖ କରାଯାଇଅଛି ?

୩ । "ଯେଉଁ ଦେଶରେ [illegible] ପରି ବାଳକର ଜନ୍ମ ହୋଇଛି, ସେ ଦେଶରେ କେଉଁ କୋଣାର୍କ ଆବଶ୍ୟକ ?"— ପୂର୍ବାପର ସମ୍ପର୍କ ଦେଇ ବୁଝାଇଦିଅ ।

୪ । ଅପରାଧୀ, ପୁରସ୍କାର, ପୁଣ୍ୟ, ସମର୍ଥ, ମାନ, ମୃତ୍ୟୁ, ବିଶାଳ— କେଉଁ କେଉଁ ପଦଦ୍ୱାରା ଉଲ୍ଲିଖିତ ପଦଗୁଡ଼ିକର ବିପରୀତାର୍ଥ ପ୍ରକାଶ ପାଏ ?

---

# ଭଇ ଓ ମହୁମାଛି

ମଧୁମକ୍ଷିକାକୁ ଭଇ କହେ, "କି ନିର୍ବୋଧ ତୁହି,
ଅକାରଣ ଖଟି କରୁ ମେଳ,
ଜାଣିପାରୁ ନୋ ନିକଟୁଁ ଅଟବେ ହରନ୍ତି ମଧୁ,
ଫୁଲବାସେ ରହୁ ତୁହି ଭୋଳେ ।

ଦେଖ ମୋତେ, ନୀରବରେ   ବିପୁଳ ସାଧନା କରେଁ
ରଚେଁ ଘର କର ନିରାପଦ,
ଗୀତ ଗାଇ ଫୁଲେ ଫୁଲ୍ଁ   କହ କିପାଁ ଉଡ଼ ବୁଲ୍,
ଗୁଣୁ ଗୁଣୁ କରୁ ତୁ ଶବଦ ?"



[ ମହୁଫେଣା ଓ ଉଈହୁଙ୍କା ]

ଉଡ଼ି ବଲ୍ମୀକ ପାଶେ   ହସି ମହୁମାଛି ଭଣେ,
"ପରହିତ ପାଇଁ ମୋ ସଞ୍ଚୟ,
ହରଷେ ମୁଁ ଗାଏଁ ଗୀତ,   ସରସ ସଦା ମୋ ଚିତ୍ତ,
ନ ଗଣେଁ ତିଳେ ଦୁଃଖ ଭୟ ।

ସ୍ୱାର୍ଥ ଲାଗି ସଦା ଅନ୍ଧ  କରୁ ତୁହି ଅତି ମନ୍ଦ,
ବନ୍ଧୁ ଧନ କରୁ ଛାରଖାର,
ସୁନ୍ଦର ବସନ କାଟି  କ୍ଷଣକେ କରୁ ତୁ ମାଟି,
କେତେ ଗ୍ରନ୍ଥ ହୁଏ ତୋ ଆହାର ।
ଫୁଲ ମୋର ପ୍ରିୟବନ୍ଧୁ  ହସି ଯାଚି ଦିଏ ମଧୁ,
କହେ, 'ଯେତେ ଯେତେ ଯାଅ ରସ,
ଢାଳି ଦେଇ ପ୍ରୀତିସୁଧା  ସୁଖୀ କର ଏ ବସୁଧା,
ଗାଅ ତୁମେ, ବାତରେ ମୁଁ ହସ ।'
ବହି ନାଏଁ ରେଣୁ ରସ,  ଫୁଲର ବଢ଼ାଏ ବଂଶ,
କାନେ କାନେ ଗାଏଁ ତାର ଗୀତ,
'କୁସୁମ ସଙ୍ଗୀତ ଭବ  ଅତି ସୁଖମୟ ଧବ
ଆନନ୍ଦରେ କର ମରହିତ ।'
ଜଗତର ହିତ ଲାଗି  ସଦା ମୁହିଁ ଅନୁରାଗୀ,
ତେଣୁ ସର୍ବେ କରନ୍ତି ଆଦର,
ତୁହି ମନ୍ଦଗୁଣ ଯୋଗୁ  କେତେ ଦୁଃଖ କଷ୍ଟ ଭୋଗୁ,
ଶେଷେ ଘଟେ ନିଧନ ତୋହର ।"

## ପ୍ରଶ୍ନ

୧ । ମହୁମାଛିର କି ଦୋଷ ଦେଖାଇ କଇ ତାହାକୁ ତିରସ୍କାର କଲା ଏବଂ ଜଇର କି ଦୋଷ ବର୍ଣ୍ଣନା କରି ମହୁମାଛି ନିଜର ମହତ୍ତ୍ୱ ପ୍ରଦର୍ଶନ କଲା ?

୨ । ଏହି କଥୋପକଥନରେ କାହାର ଯୁକ୍ତି ତୁମ୍ଭଙ୍କୁ ଯଥାର୍ଥ ବୋଧ ହେଉଅଛି ଏବଂ କାହିଁକି ?

୩ । ମହୁମାଛି ଫୁଲର କଣ ବଢ଼ାଏ କପରି ?

୪ । 'କୁସୁମ ସଙ୍ଗୀତ ଭରା......ପରହିତ'—ଏହାର ଭାବ ନିଜ ଭାଷାରେ ଲେଖ ।

୫ । ସରସ, ସ୍ୱାର୍ଥ, ନିର୍ବୋଧ, ଆନନ୍ଦ, ପ୍ରିୟ, ଅନୁରାଗ—ଏଗୁଡ଼ିକର ବିପରୀତାର୍ଥବୋଧକ ଶବ୍ଦଗୁଡ଼ିକୁ ଗୋଟିଏ ଗୋଟିଏ ବାକ୍ୟରେ ବ୍ୟବହାର କର ।

---

# ଭାରତର ରାଜଧାନୀ

ଅତି ପ୍ରାଚୀନ କାଳରୁ ଭାରତବର୍ଷ ଏକ ସଭ୍ୟ ଦେଶରୂପେ ଓ ଦିଲ୍ଲୀ ଏହାର ରାଜଧାନୀରୂପେ ପରିଚିତ । ଏହି ନଗରୀ ଭାରତର 'ଦେହଳୀ' ବା ପ୍ରବେଶଦ୍ୱାର କହିଲେ ଚଳେ । ଦେହଳୀ ଶବ୍ଦରୁ ଦିଲ୍ଲୀ ନାମ ଅପଭ୍ରଷ୍ଟ ହୋଇଅଛି ବୋଲି କୁହାଯାଏ । ମହାଭାରତରେ ବର୍ଣ୍ଣିତ ଯୁଧିଷ୍ଠିରଙ୍କ ରାଜଧାନୀ ଇନ୍ଦ୍ରପ୍ରସ୍ଥ ଆଧୁନିକ ଦିଲ୍ଲୀ ନିକଟରେ ଅବସ୍ଥିତ ଥିଲା । ପୂର୍ବେ ଦିଲ୍ଲୀର ଅଧୀଶ୍ୱରମାନେ ଅସୀମ କ୍ଷମତାଶାଳୀ ଥିଲେ । ସେଥିପାଇଁ ସଂସ୍କୃତରେ ଗୋଟିଏ ପ୍ରବାଦ ଅଛି । ସେ ପ୍ରବାଦର ଅର୍ଥ "ଦିଲ୍ଲୀର ଅଧୀଶ୍ୱର ଜଗଦୀଶ୍ୱରଙ୍କ ସମ ।"

ବିଭିନ୍ନ ସମୟରେ ହିନ୍ଦୁରାଜାମାନେ ଭାରତର ଭିନ୍ନ ଭିନ୍ନ ସ୍ଥାନରେ ରାଜଧାନୀ ସ୍ଥାପନ କରିଥିଲେ । ଆଜି ମଧ୍ୟ ଦିଲ୍ଲୀ ଭାରତର ରାଜଧାନୀ । ବାରମ୍ବାର ଏହା ଶତ୍ରୁକବଳରେ ପଡ଼ିଅଛି ଓ କ୍ରମାଗତ ଆକ୍ରମଣଦ୍ୱାରା ଦିଲ୍ଲୀର ପ୍ରାଚୀନ କାଳର ପ୍ରାସାଦଗୁଡ଼ିକ ଧ୍ୱଂସପ୍ରାପ୍ତ ହୋଇଅଛି । କେବଳ କେତେକ ମନ୍ଦିର,ସ୍ତମ୍ଭ,ଶିଳାଲେଖ ଓ ମସଜିଦ୍‌ର ଧ୍ୱଂସାବଶେଷ ଆଜି ଅତୀତ ସମୃଦ୍ଧିର ସାକ୍ଷ୍ୟ ଦେଉଅଛି ।

କୋଟି କୋଟି ମୁଦ୍ରାବ୍ୟୟରେ ନିର୍ମିତ ମୟୂରସିଂହାସନ ଓ ପ୍ରସିଦ୍ଧ କୋହିନୁର ହୀରକ ମଧ୍ୟ ଆକ୍ରମଣକାରୀମାନେ ଏଠାରୁ ନେଇ ପଳାଇଥିଲେ ।

ଯମୁନା ନଦୀକୂଳରେ ଦୁଇ ମାଇଲ୍ ପର୍ଯ୍ୟନ୍ତ ଦିଲ୍ଲୀନଗରୀ ବିସ୍ତୃତ । ମୋଗଲସମ୍ରାଟ୍ ଶାହାଜାହାନ ଏ ନଗରୀକୁ ପୁନର୍ବାର ନୂତନଭାବରେ ନିର୍ମାଣ କରିଥିବାରୁ ଦିଲ୍ଲୀର ଅନ୍ୟ ନାମ



[ ଲାଲକିଲ୍ଲାର ଦୃଶ୍ୟ ]

ଶାହାଜାହାନାବାଦ ହୋଇଥିଲା । ପରବର୍ତ୍ତୀ ମୋଗଲସମ୍ରାଟ୍ମାନେ ମଧ୍ୟ ସୁନ୍ଦର ହର୍ମ୍ୟମାନ ନିର୍ମାଣ କରି ଏହାର ଶୋଭା ବଢ଼ାଇଥିଲେ ।

ମୋଗଲମାନଙ୍କର ପ୍ରଧାନ କୀର୍ତ୍ତିମଧ୍ୟରେ ଦିଲ୍ଲୀର ଜୁମା ମସ୍‌ଜିଦ୍ ପୃଥିବୀର ସବୁଠାରୁ ବଡ଼ ମସ୍‌ଜିଦ୍‌ରୂପେ ବିଖ୍ୟାତ ।

ଲୋହିତ ପ୍ରସ୍ତର ଓ ଶୁଭ୍ର ଶ୍ୱେତମର୍ମ୍ମର ପ୍ରସ୍ତରଦ୍ୱାରା ନିର୍ମିତ ହୋଇ ଏକ ଅଟ୍ଟାଳିକାଟି ଗୋଟିଏ ଉଚ୍ଚ ମୂଳଦୁଆ ଉପରେ ଗଠିତ ହୋଇଅଛି । ବର୍ତ୍ତମାନ ଦିଲ୍ଲୀର ଅଳ୍ପ ଦୂରରେ ବିଖ୍ୟାତ କୁତବ-ମିନାର ସ୍ତମ୍ଭ ଅଛି । ଏହା ଟଳୁ ୨୩୮ ଫୁଟ ଉଚ୍ଚ । ଏହି ସ୍ତମ୍ଭର ଶିଖରଦେଶକୁ ଯାଇ ସେଠାରୁ ଚତୁର୍ଦ୍ଦିଗର ମନୋହର ଦୃଶ୍ୟାବଳୀ ଦେଖିବାପାଇଁ ପ୍ରସ୍ତରନିର୍ମିତ ସୋପାନ ଅଛି । ସାତ ଶହ ବର୍ଷ ପୂର୍ବେ ସମ୍ରାଟ୍ କୁତବୁଦ୍ଦିନଙ୍କ ନିର୍ମିତ ମସ୍‌ଜିଦ୍ ଉପରେ ଏହି ସ୍ତମ୍ଭ ନିର୍ମିତ ହୋଇଥିବା । ଦିଲ୍ଲୀର ମୋତି ମସ୍‌ଜିଦ୍ ମଧ୍ୟ ଗୋଟିଏ ବର୍ଣ୍ଣନୀୟ ପ୍ରାସାଦ । ମୋଗଲସମ୍ରାଟ୍ ଅଉରଙ୍ଗଜେବ ଏହାକୁ ନିର୍ମ୍ମାଣ କରାଇଥିଲେ ।

ଏହା ଛଡ଼ା ଲାଲକିଲ୍ଲା, ଦେଓ୍ୟାନ୍-ଇ-ଖାସ୍, ହୁମାୟୁନଙ୍କ କବର, କଲମ୍ ମସ୍‌ଜିଦ୍, ଖଇରପୁର ମସ୍‌ଜିଦ୍ ଓ ଶେରଶାହଙ୍କ ମସ୍‌ଜିଦ୍ ପ୍ରଭୃତି ଅନେକ ସୁନ୍ଦର ପ୍ରାଚୀନ ଅଟ୍ଟାଳିକା ଏଠାରେ ଅବସ୍ଥିତ । ଏଗୁଡ଼ିକମଧ୍ୟରୁ ହୁମାୟୁନଙ୍କ କବର ସର୍ବାପେକ୍ଷା ମନୋହର ଓ ମୂଲ୍ୟବାନ ବୋଲି ବିବେଚିତ ହୋଇଥାଏ । ଗତ ମହାଯୁଦ୍ଧରେ ସୁଭାଷ ବୋଷଙ୍କ ନେତୃତ୍ୱରେ ଯେଉଁ ଭାରତ ଜାତୀୟ ବାହିନୀ ଗଠିତ ହୋଇ ଭାରତକୁ ସ୍ୱାଧୀନ କରିବା ଉଦ୍ଦେଶ୍ୟରେ ଅଭିଯାନ ଆରମ୍ଭ କରିଥିଲା, ତାହାର କେତେକ ସୈନ୍ୟାଧ୍ୟକ୍ଷ ଦିଲ୍ଲୀର ଲାଲକିଲ୍ଲାରେ ବନ୍ଦୀ ହୋଇଥିଲେ । ସେହି ଲାଲକିଲ୍ଲାରେ ହିଁ ସେମାନଙ୍କର ବିଚାର ହୋଇଥିଲା । ବନ୍ଦୀମାନଙ୍କ ପକ୍ଷରେ ପରଲୋକଗତ ଭୁଲାଭାଇ ଦେଶାଇ ପ୍ରମୁଖ ଅଇନଜ୍ଞ କଂଗ୍ରେସ-ନେତାମାନେ ଲଢ଼ିଥିଲେ । ପଣ୍ଡିତ ଜବାହରଲାଲ ନେହେରୁ ମଧ୍ୟ ପ୍ରଥମ ଥରପାଇଁ ସେମାନଙ୍କ ପକ୍ଷରେ ଓକିଲାତି କଲେ । ସେମାନେ ଖଲାସ ହେବା ପରେ ଇଂରେଜ ସରକାର ଭାରତକୁ ଶାସନ

କ୍ଷମତା ହସ୍ତାନ୍ତର କରିବା ବିଷୟ ଆଲୋଚିତ ହେଲା । କ୍ଷମତା ହସ୍ତାନ୍ତର ଦିନ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଏହି ଲାଲକିଲ୍ଲାଉପରେ ପ୍ରଥମେ ଭାରତର ଜାତୀୟ ପତାକା ଉଡ଼ାଇଲେ । ତାହାପୂର୍ବରୁ ସେଠାରେ ଇଂରେଜ ପତାକା ଇଉନିୟନ୍ ଜ୍ୟାକ୍ ଉଡୁଥିଲା ।



[ ନୂଆଦିଲ୍ଲୀର ରାଷ୍ଟ୍ରପତି-ଭବନ ]

ଇଂରେଜମାନେ ଭାରତର ଶାସନଭାର ଗ୍ରହଣ କରିବାପରେ ପ୍ରଥମେ କଲିକତାକୁ ରାଜଧାନୀ କରିଥିଲେ । ସମ୍ରାଟ୍ ପଞ୍ଚମ ଜର୍ଜଙ୍କ ଆଗମନ ଉପଲକ୍ଷରେ ୧୯୧୧ ମସିହା ଡିସେମ୍ବର ମାସ ୧୨ ତାରିଖରେ ଦିଲ୍ଲୀଠାରେ ଗୋଟିଏ ବିଖ୍ୟାତ ଦରବାର ଆଡ଼ମ୍ବର-ସହକାରେ ଅନୁଷ୍ଠିତ ହୋଇଥିଲା । ଏହି ଦରବାରରେ କଲିକତାରୁ ଦିଲ୍ଲୀକୁ ରାଜଧାନୀ ଉଠାଇନେବାର ନିଷ୍ପତ୍ତି ସମ୍ରାଟଙ୍କଦ୍ୱାରା

ଘୋଷିତ ହେଲା । ସମ୍ରାଟ୍ ପଞ୍ଚମଜର୍ଜ ଡିସେମ୍ବର ୧୫ ତାରିଖରେ ପ୍ରାଚୀନଦିଲ୍ଲୀ ନିକଟରେ ଏକ ନୂତନ ନଗରର ନିର୍ମାଣ ପାଇଁ ଶୁଭ ଦେଇଥିଲେ । ନୂତନଦିଲ୍ଲୀର ନିର୍ମାଣ କାର୍ଯ୍ୟ ଅଠର ବର୍ଷରେ ସମାପ୍ତ ହୋଇଥିଲା । ଏହି ନଗରର ନାମ "ନୂଆଦିଲ୍ଲୀ" ।

ସମଗ୍ର ଦିଲ୍ଲୀର ଲୋକସଂଖ୍ୟା ଗୁରି ଲକ୍ଷ ଏବଂ ଭାରତୀୟ ସହରମାନଙ୍କର ଲୋକସଂଖ୍ୟା ଦୃଷ୍ଟିରେ କଲିକତା, ବମ୍ବେ, ମାନ୍ଦ୍ରାଜ ଓ ହାଇଦରାବାଦ ପରେ ଏହା ପଞ୍ଚମ ସ୍ଥାନ ଲାଭ କରିଅଛି ।



[ ଭାରତ-ବ୍ୟବସ୍ଥାପକ-ସଭାଗୃହର ଦୃଶ୍ୟ ]

ନୂଆଦିଲ୍ଲୀ ଯେଉଁଠାରେ ନିର୍ମିତ ହୋଇଅଛି, ତାହା ପୂର୍ବେ ରାଇସିନା ନାମକ ଏକ ପାର୍ବତ୍ୟ ଭୂମି ଥିଲା । ବର୍ତ୍ତମାନ ସେଠାରେ ବହୁସଂଖ୍ୟକ ସରକାରୀ ଗୃହ, ବାସଗୃହ, ଯାଦୁଘର ଓ ବ୍ୟବସ୍ଥାପକମାନଙ୍କ ପାଇଁ ବଡ଼ ବଡ଼ ଅବାସ ନିର୍ମିତ ହୋଇଅଛି । ନୂଆଦିଲ୍ଲୀର ନିର୍ମାଣ କାର୍ଯ୍ୟରେ ସରକାରଙ୍କ ବହୁ ଅର୍ଥ ବ୍ୟୟ କରିବାକୁ ପଡ଼ିଅଛି । ପ୍ରତିଦିନ ଯେତେ ମଜୁରିଆ ଏହି କାର୍ଯ୍ୟ କରୁଥିଲେ, ସମୟ ସମୟରେ ସେମାନଙ୍କର ସଂଖ୍ୟା ଅଣତିରିଶ

ହଜାର ହୋଇଥିଲା । ଏହି ନଗରୀର ନିର୍ମାଣରେ ଅନ୍ୟାନ୍ୟ ଉପକରଣ ଛଡ଼ା ଯେତେ ଇଟା ବ୍ୟବହୃତ ହୋଇଅଛି, ସେଗୁଡ଼ିକୁ ଲମ୍ବା ବାଗରେ ଗୋଟିକ ପରେ ଗୋଟିକୁ ଲଗାଇ ରଖି ପୃଥିବୀର ପରିଧି ଉପରେ ଗୃହ ଥର ଘେରାଇ ଦିଆଯାଇପାରେ ।

ନୂଆଦିଲ୍ଲୀର ପ୍ରଧାନ ପଥର ଦୁଇ ପାର୍ଶ୍ୱରେ ରାଷ୍ଟ୍ରପତିଙ୍କ କର୍ମଚାରୀମାନଙ୍କର ଆବାସ, ଯାଦୁଘର ଓ ରେକର୍ଡ଼ ଅଫିସ ଅବସ୍ଥିତ; ସମ୍ମୁଖରେ ଦୁଇଟି କେନ୍ଦ୍ରଶାସନ କାର୍ଯ୍ୟାଳୟ ଓ ଏ ଉଭୟମଧ୍ୟରେ ରାଷ୍ଟ୍ରପତି-ଭବନର ବିରାଟ ଗମ୍ବୁଜ ଦେଖାଯାଏ ।

କେନ୍ଦ୍ର ବ୍ୟବସ୍ଥାପକ ସଭାଗୃହର ନିର୍ମାଣ ପ୍ରଣାଳୀ ସମ୍ପୂର୍ଣ୍ଣ ନୂତନ । ଦେଖିବାକୁ ଏହା ବୃହତ୍ତର ଗୋଲକାର ଓ ଚତୁର୍ଦ୍ଦିଗରେ ଅନେକ ସ୍ତମ୍ଭଦ୍ୱାରା ବେଷ୍ଟିତ । ଏହାର ପରିଧି ପ୍ରାୟ ଅଧମାଇଲ ଅଟେ । ଏ ବିଶାଳ ମନ୍ଦିରର ଏକ ଅଂଶରେ ଭାରତର ଉଚ୍ଚତମ ବିଚାରାଳୟ ସୁପ୍ରିମକୋର୍ଟ ଏବଂ କେନ୍ଦ୍ରସ୍ଥଳରେ ଗୋଟିଏ ଗମ୍ବୁଜଯୁକ୍ତ ଗ୍ରନ୍ଥାଳୟ ଅଛି । ଗ୍ରନ୍ଥାଳୟକୁ ଲଗିଥିବା ପ୍ରାସାଦରେ ରାଷ୍ଟ୍ରସଭା ଓ କେନ୍ଦ୍ର-ବ୍ୟବସ୍ଥାପକ-ସଭାର ବୈଠକମାନ ହୋଇଥାଏ । ଏହି ହର୍ମ୍ୟମାନଙ୍କର ମଧ୍ୟବର୍ତ୍ତୀ ସ୍ଥାନରେ ଉନ୍ମୁକ୍ତ ପ୍ରାଙ୍ଗଣ ଓ କୃତ୍ରିମ ଝରଣାମାନ ଗୃହଗୁଡ଼ିକର ସୌନ୍ଦର୍ଯ୍ୟ ବର୍ଦ୍ଧନ କରୁଅଛି ।

ଦିଲ୍ଲୀନଗରୀ ବର୍ତ୍ତମାନ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶରୂପେ ଶାସିତ ହେଉଅଛି । ଏଠାରେ ଭାରତବର୍ଷର କେନ୍ଦ୍ର ସରକାର ପ୍ରତିଷ୍ଠିତ ହେବାରୁ ଦିଲ୍ଲୀର ପ୍ରାଚୀନ ଗୌରବ ଅକ୍ଷୁର୍ଣ୍ଣ ରହିଅଛି । ପୁଣି ବହୁ କାଳପରେ ସବୁ ସରକାରୀ ଗୃହ ଉପରେ ଆଜି ଇଂରେଜ ସାମ୍ରାଜ୍ୟର ପତାକା ବଦଳରେ ଭାରତର ଜାତୀୟ-ପତାକା ସ୍ୱାଧୀନତା ଘୋଷଣା କରୁଅଛି ।

## ପ୍ରଶ୍ନ

୧ । ଦିଲ୍ଲୀରେ ମୋଗଲସମ୍ରାଟ୍‌ମାନଙ୍କର ଯେଉଁସବୁ କୀର୍ତ୍ତି ବର୍ତ୍ତମାନ ଦେଖାଯାଏ, ସେ ସମ୍ବନ୍ଧରେ ଯାହା ଜାଣ ଲେଖ ।

୨ । ନୂଆଦିଲ୍ଲୀର ବର୍ଣ୍ଣନା ସଂକ୍ଷେପରେ ଲେଖ ।

୩ । କେବଳ, କ୍ରମାଗତ, ଧ୍ୱଂସାବଶେଷ, ହର୍ମ୍ମ୍ୟ, ବ୍ୟବସ୍ଥାପକ-ସଙ୍ଘ, କର୍ମସଚିବ, ରାଷ୍ଟ୍ରପତି, କୃତ୍ରିମ—ଏ ଶବ୍ଦଗୁଡ଼ିକର ଅର୍ଥ ଲେଖ ।

୪ । ପ୍ରାଚୀନକାଳ, କଲିକତା, ଶିଖର, ଝରଣା, ଗ୍ରନ୍ଥାଳୟ—ଏ ଶବ୍ଦଗୁଡ଼ିକୁ ଅପାଦାନ କାରକରୂପେ ବ୍ୟବହାର କରି ଗୋଟିଏ ଗୋଟିଏ ବାକ୍ୟ ରଚନା କର ।

---

# ବିଚିତ୍ର ପୋଷାକ

ଏକ ଦେଶରେ ଜଣେ ସୌଖୀନ ରାଜା ଥିଲେ । ପ୍ରତି ଘଣ୍ଟାରେ ଗୋଟିଏ ନୂତନ ପୋଷାକ ପିନ୍ଧିବା ତାହାଙ୍କର ପ୍ରଧାନ କାର୍ଯ୍ୟ ଥିଲା । ତେଣୁ ସେଦେଶର ଲୋକେ 'ରାଜା ଭଲ ବିଚାର କରୁଅଛନ୍ତି' କିମ୍ବା 'ଭଲରୂପେ ପ୍ରଜାପାଳନ କରୁଅଛନ୍ତି' ନ କହି କହୁଥାଆନ୍ତି, 'ରାଜା ଆଜି ଭଲ ପୋଷାକ ପିନ୍ଧିଅଛନ୍ତି ।'

ନୂତନ ପରିଚ୍ଛଦପାଇଁ ରାଜା ଏକପ୍ରକାର ପାଗଳ ହୋଇ ପଡ଼ିଥିଲେ । ଥରେ ସେ ଘୋଷଣା କଲେ ଯେ, ଯେଉଁ କାରିଗର ତାହାଙ୍କ ପାଇଁ ସମ୍ପୂର୍ଣ୍ଣ ନୂଆ ଧରଣର ପୋଷାକ ପ୍ରସ୍ତୁତ କରିପାରିବ, ତାହାକୁ ସେ ଲକ୍ଷେ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଦେବେ ।

ଏହି ସମ୍ବାଦ ପାଇ ଦୁଇ ଜଣ ଧୂର୍ତ୍ତ ବ୍ୟକ୍ତି ରାଜାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କହିଲେ, "ମହାରାଜ ! ଆମ୍ଭେମାନେ ଯେଉଁ

ନୂତନ ପୋଷାକ ପ୍ରସ୍ତୁତ କରିଦେବୁଁ, ତାହାର ଏକ ବଡ଼ଗୁଣ ଅଛି । ବୁଦ୍ଧିହୀନ ଏବଂ ନିଜ ସ୍ଥାନର ଅଯୋଗ୍ୟ ବ୍ୟକ୍ତିମାନଙ୍କର ଚକ୍ଷୁକୁ ତାହା ଦେଖାଯିବ ନାହିଁ ।"

ଏହା ନିଶ୍ଚୟ ସବୁଠାରୁ ଅଦ୍ଭୁତ ପରିଚ୍ଛଦ ହେବ ଭାବି ପୋଷାକ-ଅନ୍ଧ ରାଜା ସେହି ତାନ୍ତିଙ୍କ ଦୁଇ ଜଣଙ୍କୁ ପଚାରିଲେ, "ଏପରି ପରିଚ୍ଛଦରେ କେତେ ଖର୍ଚ୍ଚ ହେବ ?"

ଧୂର୍ତ୍ତ ଦୁହେଁ ଯେଉଁ ପରିମାଣରେ ରେଶମସୂତା, ସ୍ୱର୍ଣ୍ଣଜରି ଓ ମୋତିମାଣିକ୍ୟର ହିସାବ ଦେଲେ, ତାହା ଶୁଣି ରାଜା ଅଧିକ ଆନନ୍ଦିତ ହୋଇ ଭାବିଲେ, "ବାସ୍ତବରେ ଏପରି ମୂଲ୍ୟବାନ୍ ପୋଷାକ ତ ମୋର ଭଣ୍ଡାରରେ ନାହିଁ ।" ସେ ତପରେ ସେମାନଙ୍କୁ କହିଲେ, "ଆଜିଠାରୁ ପନ୍ଦର ଦିନମଧ୍ୟରେ ଏହି ପୋଷାକ ସମ୍ପୂର୍ଣ୍ଣ କରି ତୁମ୍ଭେମାନେ ଦେବ । ଏହି ପୋଷାକ ପିନ୍ଧି ଅମ୍ଭେ ଏଥର ରାଜ୍ୟାଭିଷେକ-ଉତ୍ସବ ପାଳନ କରିବୁଁ ।"

ଧୂର୍ତ୍ତ ଦୁହେଁ ତନ୍ତ ଘାଟରେ ବସି ବସ୍ତ୍ରବୟନର ଛଳନା କଲେ । ରାଜଭଣ୍ଡାରରୁ ଯେତେ ରେଶମସୂତା, ସ୍ୱର୍ଣ୍ଣଜରି ଓ ମଣି-ମାଣିକ୍ୟ ପାଇଲେ, ସେସବୁ ସେମାନେ ଗୋପନରେ ରଖିଲେ । ତନ୍ତ ନିକଟରେ ପାନାହାର କରି ଏବଂ ରାତିରେ ଅନେକ କାଳ ସେମାନେ କଠିନ ଅଧ୍ୟବସାୟଦ୍ୱାରା ପରିଚ୍ଛଦ ବୁଣିବା ପରି ଛଳନା କଲେ । ଦିନକୁ ଦିନ ତାହାଙ୍କୁ ରାଜଭଣ୍ଡାରରୁ ଅଧିକ ପରିମାଣରେ ସ୍ୱର୍ଣ୍ଣଜରି ଓ ମଣିମୁକ୍ତା ମିଳିଲା ।

ଏହି ଅଦ୍ଭୁତ ବସ୍ତ୍ର ଦେଖିବାପାଇଁ ରାଜାଙ୍କ ମନରେ କ୍ରମେ ଉଦ୍‌ବେଗ ବଢ଼ିଲା; କିନ୍ତୁ ତାହାଙ୍କର ମନେ ପଡ଼ିଲା ଯେ, ନିତାନ୍ତ ବୋକା ଏବଂ ଅଯୋଗ୍ୟ ବ୍ୟକ୍ତିକୁ ତ ଏ ପୋଷାକ ଦେଖାଯିବ

ନାହିଁ । ତେଣୁ ବୁଦ୍ଧିମାନ୍ ଓ କାର୍ଯ୍ୟଦକ୍ଷ ପ୍ରଧାନମନ୍ତ୍ରୀଙ୍କୁ ସେ ପ୍ରଥମେ ପଠାଇଲେ ।

ସେତେବେଳକୁ ଏହି ଚମତ୍କାର ଅଲୌକିକ ଶକ୍ତି ବିଷୟ ଘୋଷିତ ହୋଇଗଲାଣି । ପ୍ରତ୍ୟେକ ଲୋକ ରାଜପୋଷାକର ସମୟକୁ ଆଗ୍ରହରେ ଅପେକ୍ଷା କରୁଅଛନ୍ତି ।

ରାଜାଙ୍କର ବସ୍ତ୍ର ଅଣାଯାଇ ଦେଖିଲେ ଯେ କାରିଗର ଦୁହେଁ ବସ୍ତ୍ରବୟନରେ ବ୍ୟସ୍ତ; ଅଥଚ ତନ୍ତ ଦୁଇଟି ଶୂନ୍ୟ ପଡ଼ିଅଛି । ସେ ଅବାକ୍ ହୋଇ ଭାବିଲେ, "ଏହାର ଅର୍ଥ କଅଣ ? ମୁଁ ତ କାହିଁ କିଛି ଦେଖିଲେ ସୁଦ୍ଧା ଦେଖିବାକୁ ପାଉ ନାହିଁ । ତେବେ କଅଣ ମୁଁ ବୁଦ୍ଧିହୀନ ? ଏତେ ଦିନ ଯେଉଁ ମନ୍ତ୍ରିତ୍ୱ କରି ମୋର ବାର୍ଦ୍ଧକ୍ୟ ଉପସ୍ଥିତ, ସେ ପଦପାଇଁ ତେବେ କଅଣ ମୁଁ ଅଯୋଗ୍ୟ ?"

ମନ୍ତ୍ରୀଙ୍କୁ ଚିନ୍ତିତ ଦେଖି ଜଣେ ଠକ ପଚାରିଲା, "ପ୍ରଧାନମନ୍ତ୍ରୀ ମହାଶୟ ! କାର୍ଯ୍ୟଟି ଆପଣଙ୍କ ପସନ୍ଦକୁ କିପରି ଆସୁଅଛି ?" ତାପରେ ସେହି ଶୂନ୍ୟତନ୍ତର ସ୍ଥାନେ ସ୍ଥାନେ ଅଙ୍ଗୁଳି ନିର୍ଦ୍ଦେଶ କରି ସେ କହିଲା, "ଏଠାରେ ଏ ରଙ୍ଗଟି ଆପଣଙ୍କୁ ପସନ୍ଦ ବୋଧ ହେଉଅଛି ତ ? ଏଠାରେ ଯେଉଁ ସ୍ୱର୍ଣ୍ଣଜରି ଦିଆଯାଇଅଛି ଏବଂ ଏଠାରେ ଜଡ଼ିଥିବା ମୁକ୍ତା ଓ ମାଣିକ୍ୟର କଣିକାଗୁଡ଼ିକ ଆପଣଙ୍କ ମନକୁ ଘେନୁଅଛି ତ ? ନଚେତ୍ ଆପଣ ଯେପରି ଆଦେଶ କରିବେ, ଆମ୍ଭେମାନେ ସେହିପରି କରିଦେବୁଁ ।"

ପ୍ରଧାନମନ୍ତ୍ରୀ ସେତେବେଳକୁ ଗଭୀର ଚିନ୍ତାମଗ୍ନ । ସେ ଶୂନ୍ୟ ତନ୍ତରେ ଏସବୁ ଦେଖିବେ କିପରି ? ପୁଣି, କିଛି ଦେଖିପାରୁ ନାହାନ୍ତି ବୋଲି ପ୍ରକାଶ କରିବେ କିପରି ? ତାହାହେଲେ ତ ସେ ବୋକା ଏବଂ ଅଯୋଗ୍ୟ ବୋଲି ପ୍ରମାଣ ମିଳିଯିବ ।